ଦମୟନ୍ତୀଙ୍କର

# ସୁଦଶା ବ୍ରତ


ପ୍ରାପ୍ତିସ୍ଥାନ:-



ଏ. ପୁସ୍ତକ ଭଣ୍ଡାର

ବାଦାମବାଡ଼ି ବସଷ୍ଟାଣ୍ଡ, କଟକ-୯



# ଦମୟନ୍ତୀଙ୍କର

# ଶ୍ରୀ ସୁଦଶା ବ୍ରତ କଥା ଆରମ୍ଭ

ବନ୍ଦଇ ପରମାଲକ୍ଷ୍ମୀ ଜଗତ ତାରେଣୀ । ସମୁଦ୍ର ମନ୍ଥନୁ ଜାତ ହୋଇଲୁ ତୁ ଜାଣି ।୧। ତେଣୁ କରି ନାମ ହେଲା ଲକ୍ଷ୍ମୀନାରାୟଣୀ । ବିଷ୍ଣୁଙ୍କ ଘରଣୀ ମାଗୋ ଅଟୁ କମଳିନୀ ।୨। ଏଥୁ ଅନନ୍ତରେ ଦିନେ ଏମନ୍ତ ସମୟେ । ନାରଦମହର୍ଷି ଇନ୍ଦ୍ରଭୁବନେ ବିଜୟେ ।୩। ଷଡ଼ ଅର୍ଘ୍ୟ ଦେଇ ଇନ୍ଦ୍ରପାଦ ପୂଜା କଲେ । ବସିବା ନିମନ୍ତେ ଦିବ୍ୟ ଆସନେକ ଦେଲେ ।୪।

●

## ଇନ୍ଦ୍ର ଉବାଚ

କେବଣ ବ୍ରତ କଲେ କେବଣ ଫଳ ପାଇ । ଘରଣୀ ପୁତ୍ର ଦୁହିତା କେମନ୍ତେ ମିଳଇ ।୧। ଏହା ମୋତେ ସଂକ୍ଷେପିଣ କହିବା ଗୋସାଇଁ । ତବ ମୁଖୁଁ ଶୁଣିଲେ ପରତେ ଯିବି ମୁହିଁ ।

●

## ନାରଦ ଉବାଚ

ଶୁଣ ଏବେ ଇନ୍ଦ୍ର ସେହି ବ୍ରତର ମହିମା । ଯହିଁରେ ସନ୍ତୋଷ ହୋନ୍ତି ମହାଲକ୍ଷ୍ମୀ ଉମା ।୧। ମର୍ତ୍ତ୍ୟମଣ୍ଡଳରେ ସାର ଅବନ୍ତୀ ନଗର ।

ତହିଁ ବିଷ୍ଣୁ କର ବୋଲି ଅଟେ ଦ୍ୱିଜବର ।୨। ତାହାରି ଭାରିଯା ନାମ ଅଟେ ଲକ୍ଷ୍ମୀବତୀ । ସେ ବ୍ରାହ୍ମଣୀ ଲକ୍ଷ୍ମୀବ୍ରତ ସର୍ବଦା କରନ୍ତି ।୩। ଲକ୍ଷ୍ମୀଙ୍କର ଦୟା ଯେଣୁ ହେଲା ତା'ଉପରେ । ଅତୁଳ ସମ୍ପତ୍ତି ଭୋଗକରେ ମର୍ତ୍ତ୍ୟପୁରେ ।୪। ଏଥୁ ଅନନ୍ତରେ ଇନ୍ଦ୍ର ଶୁଣ ମନ ଦେଇ । ଲକ୍ଷ୍ମୀଙ୍କର ବ୍ରତ ତୋତେ କହିବା ବୁଝାଇ ।୫। ମାଘ ମାସ ଶୁକ୍ଳପକ୍ଷ ଦଶମୀ ଗୁରୁବାର । ଶ୍ରୀସୁଦଶା ବ୍ରତଗୋଟି ପଡେ ସେ ଦିନର ।୬। ସେହି ଦିନ ବ୍ରାହ୍ମଣୀ ଯେ ପ୍ରଭାତୁ ଉଠିଲା । ଏକବର୍ଣ୍ଣ ଗାଈର ଯେ ଗୋବର ଆଣିଲା ।୭। ସୁସଞ୍ଚ କରି ଘର ଦୁଆର ଲିପିଲା । ନଦୀରେ ସ୍ନାନ କରିଣ ଘରକୁ ଅଇଲା ।୮। ତଣ୍ଡୁଳ ବାଟିଣ ଝୋଟି ଆଭରଣ ଦେଲା । ଶ୍ରୀ ପରମାଲକ୍ଷ୍ମୀଙ୍କୁ ସେ ସୁମରଣା କଲା ।୯। ଦଶବର୍ଣ୍ଣ ମୁରୁଜରେ ପିତୁଳା ଲେଖିଲା । ଦଶ ଯେ ପାଖୁଡ଼ା କରି ପଦ୍ମକେ ରଖିଲା ।୧୦। ତହିଁର ଉପରେ ପୂର୍ଣ୍ଣ ଘଟକେ ସ୍ଥାପିଲା । ଘଟର ଉପରେ ଚ୍ୟୁତ ଡାଳେକ ଥୋଇଲା ।୧୧। ନାରୀକେଳ ଏକଗୋଟି ଘଟ ପରେ ଦେଲେ । ଦଶମୁଖୀ ଦୀପାବଳୀ ଜାଗର ଜାଳିଲେ ।୧୨। ଦଶଖିଅ ଧଳା ସୂତ୍ରେ ବ୍ରତକୁ ଭାଙ୍ଗିଲେ । ଚଉଁରୀ ନାମେଣ ବେତ ପାଖରେ ଥୋଇଲେ ।୧୩। ଦଶ ମୁଷ୍ଟିତଣ୍ଡୁଳ ଯେ ଘଟ ପାଖେ ଦେଲେ । ବଦରି ଫଳ ଗୋଟିଏ ଆଣିଣ ଯେ ଦେଲେ ।୧୪। ଉପରେ ତନ୍ତ୍ରାତାପ ଚାନୁଆ ଟଣାଇଲେ । ଦଶ ମେଞ୍ଚା ହଳଦୀ ଯେ ପୂର୍ଣ୍ଣକୁମ୍ଭେ ଦେଲେ ।୧୫। ସିନ୍ଦୂର କଜଳ ନେଇ ଘଟ ପରେ ଦେଲେ । ଶ୍ରୀ ପରମା ଲକ୍ଷ୍ମୀଙ୍କୁ ଯେ ସୁମରଣା କଲେ ।୧୬। ଛେନା କଦଳୀ ଯେ ସର ଘୃତ ଦେଲେ । ଦଶ ଗୋଟି ମଣ୍ଡା ନେଇ ଆଗରେ ଥୋଇଲେ ।୧୭। କର୍ପୂରରେ ଯୁକ୍ତ କରି ଆଣିଣ ବାଢ଼ିଲେ । ନଇବେଦ୍ୟ ଦେଇ ପୁଣି କଥା ଯେ ଶୁଣିଲେ ।୧୮। ଶ୍ରୀ ମହାଲକ୍ଷ୍ମୀଙ୍କି ସେ ସୁମରଣା କଲେ । ଲକ୍ଷ୍ମୀ ଦଶନାମ ଧରି ବ୍ରତେ ଗଣ୍ଠି



ଦେଲେ ।୧୯। ପ୍ରଥମ ଗଣ୍ଠିର ନାମ ଲକ୍ଷ୍ମୀ ନାରାୟଣୀ । ଦ୍ୱିତୀୟ ଗଣ୍ଠିର ନାମ ହେଲା କମଳିନୀ ।୨୦। ତୃତୀୟ ଗଣ୍ଠିର ନାମ ଶ୍ରୀହରିହର ପ୍ରିୟା । ଚତୁର୍ଥ ଗଣ୍ଠିର ନାମ ଅଟେ ପଦ୍ମାଳୟା ।୨୧। ପଞ୍ଚମ ଗଣ୍ଠିର ନାମ ଅଟଇ କମଳା । ଷଷ୍ଠ ଗଣ୍ଠିର ନାମଟି ହୋଇଲା ଚଞ୍ଚଳା ।୨୨। ସପ୍ତମ ଗଣ୍ଠିର ନାମ ଅଟେ ବିଘ୍ନସେନୀ । ଅଷ୍ଟମ ଗଣ୍ଠିର ନାମ ସିନ୍ଧୁର ଦୁଲ୍ଲଣୀ ।୨୩। ନବମ ଗଣ୍ଠିର ନାମ ଦୁର୍ଗତି ନାଶିନୀ । ଦଶମ ଗଣ୍ଠିର ନାମ ବିଷ୍ଣୁ ପାଟରାଣୀ ।୨୪। ଦଶନାମ ଧରିଣ ସେ ବ୍ରତ ଗଣ୍ଠି ଦେଲେ । ଲକ୍ଷ୍ମୀ ନାରାୟଣୀ ବୋଲି ମନେ ସୁମରିଲେ ।୨୫। ସୂର୍ଯ୍ୟଙ୍କୁ ସେ ଅର୍ଘ୍ୟ ଦେଇ ବନ୍ଦାପନା କଲେ । ନଦୀକୁ ଯେ ପାଣି କୁମ୍ଭେ ଆଣିବାକୁ ଗଲେ ।୨୬। ବ୍ରତ ହସ୍ତରୁ ଖସାଇ କୂଳରେ ରଖିଲେ । ଜଳ ଭିତରେ ଯାଇଣ ବ୍ରାହ୍ମଣୀ ପଶିଲେ ।୨୭। ମାଂସ ମେଞ୍ଚା ପ୍ରାୟ ପାଟବ୍ରତ ଦିଶୁଥିଲା । ଚିଲ ପକ୍ଷୀ ଝାମ୍ପ ଦେଇ ବେଗେ ଘେନିଗଲା ।୨୮। ସେ ବ୍ରାହ୍ମଣୀ ଜଳ ଘେନି କୂଳକୁ ଅଇଲା । ବ୍ରତ ନ ଦେଖିଣ ସେହୁ ବିସ୍ମୟ ହୋଇଲା ।୨୯। ଚାରି ଦିଗକୁ ବ୍ରାହ୍ମଣୀ ନିରେଖି ଚାହିଁଲା । ସେ ବ୍ରତକୁ ଚିଲ ଘେନି ଯାଉଛି ଦେଖିଲା ।୩୦। ଚିଲ ପଛେ ପଛେ ସେ ବ୍ରାହ୍ମଣୀ ଗୋଡାଇଲା । ସେ ଚିଲ ଯାଇଣ ଏକ ବନସ୍ତେ ପଶିଲା ।୩୧। ବ୍ରତ ନ ପାଇ ବ୍ରାହ୍ମଣୀ ବିକଳେ କାନ୍ଦିଲା । ଚିଲପକ୍ଷୀ ବନସ୍ତେ ଅଦୃଶ୍ୟ ହୋଇଗଲା ।୩୨। ଏଥୁ ଅନନ୍ତରେ ଇନ୍ଦ୍ର ଶୁଣ ହେ ବୋଇଲା । ମୃଗୟା ବିନୋଦେ ନଳ ବନସ୍ତକୁ ଗଲା ।୩୩। ବ୍ରାହ୍ମଣୀ ରୋଦନ ରାଜା କର୍ଣ୍ଣେ ଯେ ଶୁଣିଲେ । ବନସ୍ତେ କେ କାନ୍ଦୁଅଛି ବୋଲିଣ ବୋଇଲେ ।୩୪। ସଇନିକ ସଖା ଘେନି ରାଜା ବିଜେ କଲେ । ବ୍ରାହ୍ମଣୀ ପାଖରେ ଯାଇଁ ପ୍ରବେଶ ହୋଇଲେ ।୩୫। ବ୍ରାହ୍ମଣୀକୁ ଦେଖି ରାଜା ବିସ୍ମୟ ହୋଇଲେ । କି ନିମନ୍ତେ କାନ୍ଦୁଅଛି ବୋଲିଣ

ବୋଇଲେ ।୩୬। ଏହା ଶୁଣି ବ୍ରାହ୍ମଣୀ ଯେ ରାଜାଙ୍କୁ କହଇ । ମୋହର ଦୁଃଖକୁ ବାବୁ ପାରିବ କି ଫେଇ ।୩୭। ନଳ ରାଜା ବୋଇଲେ ଯେ କି ଦୁଃଖ ତୋହର । ମୋର ଆଗେ କହିଲେ ତାହା କରିବଇଁ ଦୂର ।୩୮। ଏହା ଶୁଣି ବ୍ରାହ୍ମଣୀ ଯେ ବୋଲଇ ଉତ୍ତର । ସତ୍ୟ କର ତୁମ୍ଭେ ରାଜା କହିବି ଛାମୁର ।୩୯। ବ୍ରାହ୍ମଣୀର ବାକ୍ୟ ଶୁଣି ରାଜା ସତ୍ୟ କଲେ । ଯାହା ତୁମ୍ଭେ ମାଗ ତାହା ଦେବଇଁ ବୋଇଲେ ।୪୦। ଏହା ଶୁଣି ବ୍ରାହ୍ମଣୀ ଯେ ହରଷ ହୋଇଲା । ମୋହର ସୁଦଶା ବ୍ରତ ଚିଲ ଘେନି ଗଲା ।୪୧। ତୁମ୍ଭର ଯେ ମହାଦେଈ ବ୍ରତ କରୁଛନ୍ତି । ସେହି ବ୍ରତ ଗୋଟି ତୁମ୍ଭେ ଦେବା ହେ ନୃପତି ।୪୨। ଏହାଶୁଣି ମହାରାଜା ସନମତ କଲେ । ବ୍ରାହ୍ମଣୀକୁ ଘେନି ନିଜ ରାଜ୍ୟେ ଚଳିଗଲେ ।୪୩। ବ୍ରାହ୍ମଣୀକୁ ସିଂହଦ୍ୱାରେ ବସାଇ ନୃପତି । ଅନ୍ତଃପୁରକୁ ଗମନ କରିଲେ ତଡ଼ତି ।୪୪। ରାଣୀକୁ ଯାଇଣ ନଳ ରାଜା ଯେ କହିଲେ । ଆମ୍ଭଙ୍କୁ ଏକ ମାଗୁଣି ଦେବଇଁ ବୋଇଲେ ।୪୫। ଏହା ଶୁଣି ମହାରାଣୀ ସ୍ତବ୍ଧା ହୋଇଗଲେ । ଆମ୍ଭଙ୍କୁ କିସ ମିଳିବ ଦେବଇ ବୋଇଲେ ।୪୬। ନଳରାଜା ବୋଇଲେ ଗୋ ସତ୍ୟ ଏବେ କର । ତେବେ ମୁଁ କହିବି ସିନା ମାଗୁଣି ମୋହର ।୪୭। ଏହାଶୁଣି ମହାଦେଈ ସତ୍ୟବାକ୍ୟ କଲେ । ଯେ ଇଚ୍ଛା ତୁମ୍ଭର ରାଜା ମାଗ ହୋ ବୋଇଲେ ।୪୮। ସତ୍ୟ ବାକ୍ୟ ଶୁଣି ରାଜା ବୋଇଲେ ଉତ୍ତର । ଶ୍ରୀ ସୁଦଶାବ୍ରତ ଗୋଟି ଦିଅ ଗୋ ତୁମ୍ଭର ।୪୯। ଏହା ଶୁଣି ମହାରାଣୀ ବିସ୍ମୟ ହୋଇଲେ । ଶ୍ରୀସୁଦଶା ବ୍ରତ ଦେବା ନୁହଁଇ ବୋଇଲେ ।୫୦। ଏହି ବ୍ରତଗୋଟି ଅନ୍ୟକୁ ଯେ ନ ଦିଅନ୍ତି । ବ୍ରତ ଦେଲେ ତାଙ୍କରୁ ଯେ ଲକ୍ଷ୍ମୀ ଛାଡିଯାନ୍ତି ।୫୧। ଦରିଦ୍ର ଭିକ୍ଷୁକ ବ୍ୟାଧିବନ୍ତ ଯେହୁ ହୋଇ । ଲକ୍ଷ୍ମୀଙ୍କର ବ୍ରତ ଏହି ଦେଇ ନ ପାରଇ ।୫୨। ଜଞ୍ଜାଳ କରିଣ ରାଜା ପୁନଶ୍ଚ ମାଗିଲେ । ହସ୍ତରୁ ଖସାଇ ବ୍ରତ ରାଜା କରେ ଦେଲେ ।୫୩।



ବ୍ରତ ପାଇ ମହାରାଜା ବେଗେ ଚଳିଗଲେ । ବ୍ରାହ୍ମଣୀ ହସ୍ତରେ ବ୍ରତ ନେଇଣ ସେ ଦେଲେ ।୫୪। ବ୍ରତ ପାଇ ବ୍ରାହ୍ମଣୀ ଯେ ଆନନ୍ଦ ହୋଇଲା । ରାଜାଙ୍କୁ ଆଶିଷ କରି ନିଜପୁରେ ଗଲା ।୫୫। ସେ ବ୍ରତ ନେଲା କଞ୍ଚା ଦୁଧରେ ଧୋଇଲା । ଦଶଗୋଟି ମଣ୍ଡା କରି ପାଣି ଛଡ଼ାଇଲା ।୫୬। ଆପଣା ହସ୍ତରେ ନେଇ ବ୍ରତକୁ ବାନ୍ଧିଲା । ପାଣା କରି ବ୍ରାହ୍ମଣୀ ଆନନ୍ଦେ ରହିଲା ।୫୭। ନାରଦଙ୍କୁ ଚାହିଁ ଇନ୍ଦ୍ର ପୁଣି ପୁଚ୍ଛାକଲେ । ନଳରାଜାଙ୍କର କିସ ହୋଇଲା ବୋଇଲେ ।୫୮। ନାରଦ ବୋଇଲେ ଶୁଣ ଇନ୍ଦ୍ର ମନ ଦେଇ । ନଳରାଜାଙ୍କ ବିପତ୍ତି ତୋତେ ଦେବା କହି ।୫୯। ଚରିଯିବା ଗୋରୁ ଆଉ ଘରକୁ ନଇଲେ । ପୋତିଲାର ଧନ ସବୁ ବାସୁକୀ ହରିଲେ ।୬୦। ଧାନଚାଉଳ ତ ସବୁ ବସି ଯେ ଖାଇଲେ । ଶତ୍ରୁ ଆସିଣ ରାଜ୍ୟରେ ଉପଗତ ହେଲେ ।୬୧। ରାଜା ରାଣୀ ଅନ୍ନବସ୍ତ୍ର କିଛି ନ ପାଇଲେ । ରାଜାଙ୍କୁ ରାତ୍ରରେ କାଳପୁରୁଷ ଡାକିଲେ ।୬୨। ରାଜ୍ୟ ଛାଡ଼କରି ରାଜା ପଳାଇଣ ଯାଅ । ରାଜ୍ୟେ ଥିଲେ ନିଶ୍ଚୟ ମରିବୁ ନୃପନାହା ।୬୩। ଏହାଶୁଣି ନଳରାଜା ଡେଙ୍କିଣ ଉଠିଲେ । ମହାଦେଈ ପାଶେ ଯାଇ ସକଳ କହିଲେ ।୬୪। ଚାଲ ତୁମ୍ଭ ପିତାଘର ଯିବା ହେ ବୋଇଲେ । ଏହା ଶୁଣି ମହାଦେଈ ସନମତ କଲେ ।୬୫। ସଭାଚନ୍ଦ୍ର କୁମରକୁ ହକାରି ଆଣିଲେ । ଗୃହକୁ ଛାଡିଣ ବିଜେ ରାଜାରାଣୀ ଗଲେ ।୬୬। ପ୍ରଥମରେ ଯାଇ ଏକ ପୋଖରୀ ଦେଖିଲେ । ଏଠାରେ ସ୍ନାହାନ ରାଣୀ କରିବା ବୋଇଲେ ।୬୭। ଏଠାରେ ସ୍ନାହାନ କରି ଯେ କିସ କରିବା । ପାଶରେ ତ କିଛି ନାହିଁ କଅଣ ଖାଇବା ।୬୮। ଏହା କହି ରାଜା ରାଣୀ ଜଳରେ ପଶିଲେ । ଚାରୋଟି ଗଡ଼ିଶା ମାଛ ଧରିଣ ଆଣିଲେ ।୬୯। ଏହି ମାଛ ପୋଡି ରାଣୀ ରଖି ଥାଅ ନେଇ । ପାଖେ ଅଛି ଗ୍ରାମେ ଭିକ୍ଷା ମାଗିଣ

ଆଣଇ ।୭୦। ଏହା କହି ମହାରାଜା ବିଜେ କରିଗଲେ । ବିଷ୍ଣୁକର
ପଣ୍ଡା ଘରେ ପ୍ରବେଶ ହୋଇଲେ ।୭୧। ଆମ୍ଭଙ୍କୁ ଭୋଜନ କିଛି
ଦେବ କି ବୋଇଲେ । ଏହାଶୁଣି ବ୍ରାହ୍ମଣୀ ଯେ ଅନ୍ନ ଆଣି
ଦେଲେ ।୭୨। ହରଷ ହୋଇ ରାଜା ଲେଉଟି ଅଇଲେ । ଗୃହେ ପତ୍ନୀ
କରେ ଅନ୍ନ ଦାନକୁ ଥୋଇଲେ ।୭୩। ଝାମ୍ପ ଦେଇ କାକପକ୍ଷୀ ଦାନ
ଘେନିଗଲା । ତଳେ ପଡି ଅନ୍ନ ମାଟି ଧୂଳି ହୋଇଗଲା ।୭୪। ବିରସ
ହୋଇଣ ରାଜା ସେଠାରୁ ଆସିଲେ । ଏହା ଦେଖି ମହାରାଣୀ
ସ୍ତମ୍ଭୀଭୂତ ହେଲେ ।୭୫। ଯେଉଁ ମାଛ ପୋଡ଼ି ରାଣୀ ରଖିଥିଲେ
ନେଇ । ସେହି ମାଛ ଜୀବ ପାଇ ଜଳେ ଗଲେ ଡେଇଁ ।୭୬।
ଆଚମ୍ବିତ ହୋଇ ରାଣୀ କଲେକ କ୍ରନ୍ଦନ । ପାଶେ ଆସି ମହାରାଜା
ମିଳିଲେ ବହନ ।୭୭। ମହାରାଣୀ ବୋଲେ ଲକ୍ଷ୍ମୀ ଛାଡ଼ିଲେ ଆମ୍ଭଙ୍କୁ ।
ପୋଡ଼ାମାଛ ଜୀବପାଇ ଡେଇଁଲେ ଜଳକୁ ।୭୮। ଏହାଦେଖି
ମହାରାଜା ବିସ୍ମୟ ହୋଇଲେ । ଚାଲ ଏଠାବରୁ ରାଜା ବୋଲିଣ
ବୋଇଲେ ।୭୯। ଏତେକହି ରାଜାରାଣୀ ବିଜେ କରିଗଲେ । ବନସ୍ତ
ଭିତରେ ଏକ ନଦୀ ଯେ ଦେଖିଲେ ।୮୦। ସଭାଚନ୍ଦ୍ର କୁମରକୁ
କୋଳରେ ଧଇଲେ । ନଦୀ ପାରହୋଇ ରାଜା ରାଣୀ
ଯାଉଥିଲେ ।୮୧। ଏମନ୍ତ ସମୟେ ଏକ କୁମ୍ଭୀର ମିଳିଲା । ସଭାଚନ୍ଦ୍ର
କୁମରକୁ ତଡ଼ତି ଗିଳିଲା ।୮୨। ଏହା ଦେଖି ରାଜା ରାଣୀ ବେଗେ
ପଳାଇଲେ । କାନ୍ଦି କାନ୍ଦିଣ ଯାଇ ଯେ ବନସ୍ତେ ପଶିଲେ ।୮୩।
ଭଙ୍ଗା ମନ୍ଦିର ଗୋଟାଏ ସେଠାରେ ଦେଖିଲେ । ରାଜାରାଣୀ ସେ
ମନ୍ଦିର ଭିତରେ ରହିଲେ ।୮୪। ଅଳଙ୍କାର ଖୋଲି ରାଣୀ ଅଞ୍ଚଳେ
ବାନ୍ଧିଲେ । ସେହିଠାରେ ରାଜାରାଣୀ ଶ୍ରମେ ନିଦ୍ରା ଗଲେ ।୮୫।
ସେ ମନ୍ଦିର କାନ୍ଥେ ଚିତ୍ର ମୟୂର ଯେ ଥିଲା । ରାଣୀ ଅଳଙ୍କାରମାନ
ସବୁ ଗିଳିଦେଲା ।୮୬। ରାଣୀଙ୍କ ନୟନେ କାଳନିଦ୍ରା ଯେ ଘାରିଲା ।



ରାଣୀଙ୍କୁ ଛାଡ଼ିଣ ରାଜା ତହୁଁ ପଳାଇଲା ।୮୭। ସେଠାବରୁ ନଳ
ରାଜା ଭ୍ରମି ଭ୍ରମି ଗଲେ । ଭୀମ ରାଜା ରାଜ୍ୟେ ଯାଇଁ ପ୍ରବେଶ
ହୋଇଲେ ।୮୮। ଭୀମ ରାଜା ଆଗରେ ସେ ଜଣାଇଲେ ଯାଇ ।
ଆମ୍ଭଙ୍କୁ ରଖ ହେ ରାଜା କିଛି ପଣ ଦେଇ ।୮୯। କେଉଁ ଦେଶେ
ଘର ପୁଣି କେଉଁ ଜାତି ପୁଣ । କେଉଁ କେଉଁ ବିଦ୍ୟାମାନ କରିଛ
ସାଧନ ।୯୦। ନଳ ରାଜାଙ୍କର ସୂପକାର ଥିଲି ମୁହିଁ । ଗଉରୀ ସନ୍ଦରୀ
ବିଧି ରାନ୍ଧଣା ଜାଣଇ ।୯୧। ଏହା ଶୁଣି ଭୀମରାଜା ହରଷ ହୋଇଲେ ।
ଆମ୍ଭ ସୂପକାର ହୋଇ ଥାଅ ହୋ ବୋଇଲେ ।୯୨। ଆଜ୍ଞା ପାଇ
ନଳରାଜା ସନମତ କଲେ । ରୋଷେଇ ଶାଳରେ ଯାଇ ପ୍ରବେଶ
ହୋଇଲେ ।୯୩। ରାତ୍ର ପାହିଲାରୁ ରାଣୀ ନିଦ୍ରାରୁ ଉଠିଲେ । ରାଜାଙ୍କୁ
ନଦେଖି ରାଣୀ ଡାକ ଚାରି ଦେଲେ ।୯୪। ରାଜାଙ୍କୁ ନ ପାଇ ରାଣୀ
କାନ୍ଦି କାନ୍ଦି ଗଲେ । ଛନ ଛନ ହୋଇ ସେ ସ୍ଥାନରୁ ଚଳିଗଲେ ।୯୫।
ବାଟେ ବାଟ ସେ ପଚାରି ପଚାରିଣ ଗଲା । ଭୀମରାଜା ରାଜ୍ୟେ
ଯାଇ ପ୍ରବେଶ ହୋଇଲା ।୯୬। ଭୀମସେନ ଅନ୍ତଃପୁରେ ଯାଇଣ
ମିଳିଲା । ଲକ୍ଷ୍ମୀଙ୍କ ମାୟାରୁ ନିଜ ମାତା ନ ଚିହ୍ନିଲା ।୯୭। ଦମୟନ୍ତୀ
କହନ୍ତି ଯେ ମହାଦେଈ ପାଶ । ଭାତ ଲୁଗା ଦେଇରଖ ତୁମ୍ଭର
ଉଆସ ।୯୮। ନଳ ରାଜାଙ୍କର ଦାସୀ ହୋଇଥିଲି ମୁହିଁ । କର୍ମ
ଅଭାଗ୍ୟରୁ ମୁହିଁ ସେଠାରୁ ଆସଇ ।୯୯। ଏହାଶୁଣି ମହାଦେଈ ହରଷ
ହୋଇଲେ । ଆମ୍ଭ ଅନ୍ତଃପୁରେ ଦାସୀ ହୋଇଥାଅ ଭଲେ ।୧୦୦।
ଏହାଶୁଣି ଦମୟନ୍ତୀ ସନମତ କଲେ । ନଳ ଦମୟନ୍ତୀ ଦୁହେଁ
ସେଠାରେ ରହିଲେ ।୧୦୧। ଏଥୁ ଅନନ୍ତରେ ଶୁଣଇନ୍ଦ୍ର ମନଦେଇ ।
ନଳରାଜାଙ୍କର ଶୁଭବାର୍ତ୍ତା ଦେବାକହି ।୧୦୨। ଭାଦ୍ରମାସ ଶୁକ୍ଳପକ୍ଷ
ଦଶମୀ ଗୁରୁବାର । ଶ୍ରୀ ସୁଦଶାବ୍ରତ ଗୋଟିପଡେ ସେ
ଦିନର ।୧୦୩। ପାଟ ଜ୍ୟୋତିଷ ଯାଇଣ ରାଣୀଙ୍କୁ କହିଲା । କାଲିଠୁଁ

ସୁଦଶା ବ୍ରତ ପଢୁଛି ବୋଇଲା ।୧୦୪। ଜ୍ୟୋତିଷଙ୍କୁ ଧନରତ୍ନଦେଇ ବିଦାକଲା । ଦାସୀମାନଙ୍କୁ ଡାକିଣ ବୁଝାଇ କହିଲା ।୧୦୫। ପ୍ରଭାତରୁ ଉଠି ଦାସୀମାନେ ଚଳିଗଲେ । ଏକବର୍ଣ୍ଣ ଗାଈର ଯେ ଗୋବର ଆଣିଲେ ।୧୦୬। ସୁସଜ୍ଞ କରିଣ ଘର ଦୁଆର ଲିପିଲେ । ନଦୀରେ ସ୍ନାନ କରିଣ ଘରକୁ ଆସିଲେ ।୧୦୭। ତଣ୍ଡୁଳ ବାଟିଣ ଝୁଣ୍ଟିଆଳ ପଣା ଦେଲେ । ଏହା ଦେଖି ଦମୟନ୍ତୀ ରାଣୀଙ୍କୁ କହିଲେ ।୧୦୮। ମହାରାଣୀ ମୋହପ୍ରତି ଯେବେ ଦୟା ହେବ । ଓଷାର ଉପକରଣ ଯେବେ ମୋତେ ଦେବ ।୧୦୯। ଶ୍ରୀ ସୁଦଶା ବ୍ରତଟିକୁ କରନ୍ତି କହିଲେ । ଏହାଶୁଣି ମହାଦେଈ ସନ୍ତୋଷ ହୋଇଲେ ।୧୧୦। ବ୍ରତ ଯେବେ କର ତୁମ୍ଭେ କର ଗୋ ବୋଇଲେ । ଦମୟନ୍ତୀ ଶୀଘ୍ର ସ୍ନାନ ସାରିଣ ଆସିଲେ ।୧୧୧। ଅତି ଯତନରେ ନେଇ ଘଟକେ ସ୍ଥାପିଲେ । ହଳଦୀ ଚନ୍ଦନ ନେଇ ଘଟ ପରେ ଦେଲେ । ୧୧୨। ଚ୍ୟୁତ ଡାଳ ଦେଇ ଦୀପମାନ ଲଗାଇଲେ । ଧୂପ ଦୀପ ନୈବେଦ୍ୟ ଯେ ପନ୍ଧ ପୁଷ୍ପ ଦେଲେ ।୧୧୩। ପୁର ମଣ୍ଡା ଦଶଗୋଟି ଆଗରେ ଥୋଇଲେ । ମହାଲକ୍ଷ୍ମୀଙ୍କୁ ସୁମରି ସେଠାରେ ବସିଲେ ।୧୧୪। ଲକ୍ଷ୍ମୀ ଦଶ ନାମ ଧରି ବ୍ରତେ ଗଣ୍ଠି ଦେଲେ । ଆସ ଆସ ମହାଲକ୍ଷ୍ମୀ ହୃଦେ ସୁମରିଲେ ।୧୧୫। ପ୍ରଥମ ଗଣ୍ଠିର ନାମ ଲକ୍ଷ୍ମୀନାରାୟଣୀ । ଦ୍ୱିତୀୟ ଗଣ୍ଠିର ନାମ ହେଲା କମଳିନୀ ।୧୧୬। ତୃତୀୟ ଗଣ୍ଠିର ନାମ ଯେ ଶ୍ରୀ ହରିପ୍ରିୟା । ଚତୁର୍ଥ ଗଣ୍ଠିର ନାମ ଅଟେ ପଦ୍ମାଳୟା ।୧୧୭। ପଞ୍ଚମ ଗଣ୍ଠିର ନାମ ଅଟଇ କମଳା । ଷଷ୍ଠ ଗଣ୍ଠିର ନାମଟି ହୋଇଲା ଚଞ୍ଚଳା ।୧୧୮। ସପ୍ତମ ଗଣ୍ଠିର ନାମ ଅଟେ ବିଘ୍ନସେନୀ । ଅଷ୍ଟମ ଗଣ୍ଠିର ନାମ ସିନ୍ଧୁର ଦୁଲ୍ଲଣୀ ।୧୧୯। ନବମ ଗଣ୍ଠିର ନାମ ଦୁର୍ଗତି ନାଶିନୀ । ଦଶମ ଗଣ୍ଠିର ନାମ ବିଷ୍ଣୁ ପାଟରାଣୀ ।୧୨୦। ଲକ୍ଷ୍ମୀ ଦଶନାମ ଧରି ବ୍ରତେ ଗଣ୍ଠି ଦେଲେ । ପରମାଲକ୍ଷ୍ମୀଙ୍କୁ ମନେ ସୁମରଣା



କଲେ ।୧୨୧। ହେ ପରମାଲକ୍ଷ୍ମୀ ମୋତେ ଅନୁଗ୍ରହ ହେଉ । ପୁତ୍ର ଗେରସ୍ତ ଆବର ରାଜ୍ୟ ପ୍ରାପ୍ତ ହେଉ ।୧୨୨। ଏମନ୍ତ ଭାବନା କରି ମନେ ସୁମରିଲେ । ପ୍ରସନ୍ନ ହୋଇଣ ଲକ୍ଷ୍ମୀ ରାଣୀକୁ କହିଲେ ।୧୨୩। ଯାଆ ତୋର ପୁଅ ସ୍ୱାମୀ ପ୍ରାପତ ହୋଇବେ । ତାର ହସ୍ତେ ଶତ୍ରୁମାନେ ନିପାତ ହୋଇଲେ । ୧୨୪। ନଳରାଜାଙ୍କୁ ସେ ଲକ୍ଷ୍ମୀ ସହାୟ ହୋଇଲେ ।ଏଣେ ନଳରାଜାଙ୍କର ମନ୍ତ୍ରୀ ବିଚାରିଲେ ।୧୨୫। ଆମ୍ଭର ଯେ ମହାରାଜା କେଣେ ଚଳିଗଲେ । ରାଜ୍ୟରେ କାହାକୁ ରାଜା କରିବା ବୋଇଲେ ।୧୨୬। ଏହାଶୁଣି କେହି ବୋଲେ ହେବି ମୁଁ ରାଜନ । ଆଉ କେହି ବୋଲେ ମୁହିଁ ହେବି ନୃପରାଣ ।୧୨୭। ଏହିପରି ପରସ୍ପର କରିଲେକ ଗୋଳ । ତହିଁ ସୁବୁଦ୍ଧି ନାମରେ ଥିଲା ମନ୍ତ୍ରୀବର ।୧୨୮। ମନ୍ତ୍ରୀ କହେ ଆମ୍ଭ ରାଜା କେଉଁଠି ଅଛନ୍ତି । ଆଉ ଜଣେ କେଉଁପରି ହୋଇବ ନୃପତି ।୧୨୯। ମନ୍ତ୍ରୀ ବୋଲେ ଶୁଣ ସର୍ବେ ମୋହର ବିଚାର । ପାଟହସ୍ତୀକୁ ମଣ୍ଡିଣ ଛାଡ଼ିବା ସତ୍ୱର ।୧୩୦। ସୁବର୍ଣ୍ଣ କଳସେ ଗଙ୍ଗା ଜଳ ଶିରେ ଦେଇ । ଛାଡ଼ିଦେବା ଯାହା ପରେ ଢାଳିବ ଯେ ସେହି । ୧୩୧। ତାହାକୁ ରାଜ୍ୟରେ ରାଜା କରିବାଟି ଜାଣ । । ପାଟହସ୍ତୀ ମଣ୍ଡି ଛାଡ଼ିଦେଲେ ତତକ୍ଷଣ । ୧୩୨। ମନ୍ତ୍ରୀ ପୁରୋହିତ ସହ ସକଳ ଚଳିଲେ । ରାଜ୍ୟର ପରଜାବୃନ୍ଦ ସର୍ବେ ଗୋଡ଼ାଇଲେ ।୧୩୩। ନିଜ ଇଚ୍ଛାମତେ ହସ୍ତୀ ଦ୍ରୁତଗାମୀ ହୋଇ । ଭୀମ ରାଜା ରାଜ୍ୟେ ପ୍ରବେଶିଲା ହସ୍ତୀ ଯାଇ ।୧୩୪। ପାଟହସ୍ତୀ ଯାଇ ନଳରାଜାଙ୍କୁ ଭେଟିଲା । ସୁବର୍ଣ୍ଣ କଳସୀ ଜଳ ଶିରରେ ଢାଳିଲା ।୧୩୫। ରାଜାଙ୍କୁ ନେଇଣ ହସ୍ତୀ ପୃଷ୍ଠେ ବସାଇଲେ । ଜୟ ନଳରାଜା ବୋଲି ଉଚ୍ଚେ ଡାକ ଦେଲେ ।୧୩୬। ସେ ନଗ୍ରରେ ନରନାରୀମାନେ ଦେଖୁଥିଲେ । ରାଜାଙ୍କ ଆଗରେ ଯାଇ ସମସ୍ତ କହିଲେ ।୧୩୭।ଗୁପ୍ତେ ନଳରାଜା

ସୂପକାର ପଣେ ଥିଲେ । ଏଥି ଥିବାଯାଏ ତାଙ୍କୁ କେହି ନ ଚିହ୍ନିଲେ ।୧୩୮। ତାଙ୍କ ବାକ୍ୟେ ପାତ୍ରମନ୍ତ୍ରୀ ସମସ୍ତେ ଅଇଲେ । ନଳରାଜାଙ୍କୁ ହସ୍ତୀର ପୃଷ୍ଠେ ବସାଇଲେ ।୧୩୯। ଏହାଶୁଣି ଭୀମ ରାଜା ହରଷ ହୋଇଲେ । ନଳରାଜାଙ୍କୁ ଗୌରବ କରି ଘେନିଗଲେ ।୧୪୦। ଅନ୍ତଃପୁରେ ରାଣୀ ଦମୟନ୍ତୀଙ୍କୁ ଚିହ୍ନିଲେ । ଏତ ଆମ ଦମୟନ୍ତୀ ଦୁହିତା ବୋଇଲେ ।୧୪୧। କି ନିମନ୍ତେ ଆସି ଏଠି ଗୁପତେ ରହିଲା । କି ନିମନ୍ତେ ଏ ବିରୂପ ରୂପ ହୋଇଥିଲା।୧୪୨। ଦମୟନ୍ତୀ ଏହା ଶୁଣି ବୁଝାଇ କହିଲେ । ଲକ୍ଷ୍ମୀ ଦ୍ରୋହ କରିବାରୁ ରାଜ୍ୟ ତଡ଼ାଇଲେ ।୧୪୩। ବନସ୍ତ ମଧ୍ୟରେ ସଭାଚନ୍ଦ୍ରକୁ ହରାଇ । ମୋତେ ଛାଡ଼ିକରି ରାଜା ଗଲେକ ପଳାଇ ।୧୪୪। ଏହାଶୁଣି ମହାଦେଇ ରାଜାଙ୍କୁ କହନ୍ତି । ଆମ୍ଭ ଗୃହେ ଦମୟନ୍ତୀ ଝିଅ ରହିଛନ୍ତି ।୧୪୫। ଭୀମରାଜା କହନ୍ତି ଯେ ନଳ ଆସିଛନ୍ତି । ଏହା ଦେଖି ରାଜା ରାଣୀ ହରଷ ହୁଅନ୍ତି ।୧୪୬। ଦମୟନ୍ତୀଙ୍କୁ ଧରିଣ ନଳ ପାଶେ ଗଲେ । ଦମୟନ୍ତୀଙ୍କୁ ଦେଖିଣ ନଳ ଖୁସି ହେଲେ ।୧୪୭। ରାଜାରାଣୀଙ୍କର ପାଦତଳରେ ପଡ଼ିଲେ । ମନବାଞ୍ଛା ପୂର୍ଣ୍ଣହେଉ ବୋଲିଣ ବୋଇଲେ ।୧୪୮। କିଛିଦିନ ନଳ ପୁଣି ସେଠାରେ ରହିଲେ । ଏହା ଦେଖି ରାଜା ରାଣୀ ହରଷ ହୋଇଲେ ।୧୪୯। ରାଜାଙ୍କ ଅଗ୍ରତେ ଯାଇଁ ନଳ ଜଣାଇଲେ । ନିଜ ରାଜ୍ୟକୁ ଚଳିବେ ଆଜ୍ଞା ତୁମ୍ଭେ ଦେଲେ ।୧୫୦। ବିଧିମତେ ସମ୍ମାନ ନଳରାଜାଙ୍କୁ କଲେ । ପାଟ ପୀତାମ୍ବରିମାନ ରାଜା ଯେ ପିନ୍ଧିଲେ ।୧୫୧। ନାନା ଅଳଙ୍କାର ଦେଇ ଭୂଷଣ କରିଲେ । ବିନୟ ହୋଇଣ ରାଣୀ ମାତାଙ୍କୁ କହିଲେ ।୧୫୨। ଦୟା ରଖିଥିବ ମାତା ପିତାଙ୍କୁ କହିଲେ । ଆଶିଷ କଲ୍ୟାଣ କରି ବିନୟ ହୋଇଲେ ।୧୫୩। ରତ୍ନ ହାନ୍ଦୋଳରେ ନେଇ ବିଜେ କରାଇଲେ । ବିନୟ ହୋଇଣ ରାଣୀ



ଦାସୀଙ୍କୁ କହିଲେ ।୧୫୪। ଏହି ସ୍ନେହ ସଦା ରଖିଥିବ ପ୍ରଜାମାନେ । ବିଦାୟ ଦିଅ ଯାଉଛି ନିଜ କର୍ମସ୍ଥାନେ ।୧୫୫। ଶୁଭବେଳେ ରାଜରାଣୀ ରାଜ୍ୟକୁ ଗମିଲେ । ପାତ୍ରମନ୍ତ୍ରୀ ସର୍ବେ ତାଙ୍କ ସଙ୍ଗେ ଗୋଡାଇଲେ ।୧୫୬। ଶଙ୍ଖ ଶବଦରେ ରାଜ୍ୟ ସାରା କମ୍ପାଇଲେ । ଶୁଭ ଅନୁକୂଳ କରି ବାହାର ହୋଇଲେ । ୧୫୭। କିଛି ଦୂର ଗଲାପରେ ମନ୍ଦିର ଭେଟିଲେ । ଜୟ ଶଙ୍ଖ ବୀର ଶବ୍ଦ ତୂରୀ ବଜାଇଲେ ।୧୫୮। ଯେଉଁ ମୟୂରଟି ରାଣୀ ମାଳା ଗିଳିଥିଲା । ରାଜା ରାଣୀଙ୍କୁ ଚିହ୍ନିଣ ଉଦ୍‌ଗାରିଣ ଦେଲା ।୧୫୯। ଅଳଙ୍କାର ପାଇ ରାଣୀ ହରଷ ହୋଇଲେ । ସୁରଦେବ ରାଣୀ ଶାପମୁକ୍ତ ହୋଇଗଲେ ।୧୬୦। ସେଠାବରୁ ପାତ୍ରମନ୍ତ୍ରୀ ବିଦାକରି ଦେଲେ । ତୁମ୍ଭେମାନେ ଯାଅ ଭଲେ ଆମ୍ଭେ ଯିବୁ ଭଲେ । ୧୬୧। ସେଠାବରୁ ପାତ୍ରମନ୍ତ୍ରୀ ବିଦାୟ ହୋଇଲେ । ରାଜା ରାଣୀ ବହୁତ ଆଶିଷ ଯେ ବାଞ୍ଛିଲେ ।୧୬୨। ହସ୍ତୀ ପୃଷ୍ଠେ ବସି ରାଜାରାଣୀ ଚାଲିଗଲେ । ବନସ୍ତ କନ୍ଦରେ ନଦୀ ନିକଟେ ମିଳିଲେ ।୧୬୩। ଶଙ୍ଖଧ୍ୱନି ଶବଦରେ ନଦୀ କମ୍ପିଗଲା । ଶବ୍ଦ ଶୁଣିଣ କୁମ୍ଭୀର ତତତି ଆସିଲା ।୧୬୪। ସଙ୍ଗେ ସଙ୍ଗେ ସଭାଚନ୍ଦ୍ରକୁ ଯେ ଉଦ୍‌ଗାରିଲା । ଏହି ଜନମରୁ ମୁକ୍ତ କରନ୍ତୁ ବୋଇଲା ।୧୬୫। ପୁତ୍ରକୁ ପାଇଣ ରାଣୀ ହରଷ ହୋଇଲେ । ସୁରଦେବ ରାଜ୍ୟ ଶାପୁ ମୁକ୍ତ ହୁଅ ଭଲେ ।୧୬୬। ସଭାଚନ୍ଦ୍ରକୁ ନେଇଣ କୋଳେ ବସାଇଲେ । ସେଠାବରୁ ରାଜାରାଣୀ ମନ୍ଦିରେ ଚଳିଲେ ।୧୬୭। ମହାଲକ୍ଷ୍ମୀ ନଳକୁ ଯେ ସୁଦୟା କରିଲେ । ବେତାଳମାନଙ୍କୁ ଡାକି ତହୁଁ ଆଜ୍ଞାଦେଲେ ।୧୬୮। ରାଜାରଭଣ୍ଡାର ସର୍ବ ପୂର୍ଣ୍ଣ କରି ଆସ । ପୂର୍ଣ୍ଣକରି ଆସି ମୋତେ କହିବ ସନ୍ଦେଶ ।୧୬୯। ଏହା ଶୁଣି ବେତାଳ ଯେ ଶୀଘ୍ର ଚଳିଗଲେ । ନଳରାଜାଙ୍କ ଭଣ୍ଡାର ସମ୍ପୂର୍ଣ୍ଣ କରିଲେ ।୧୭୦। ଲେଉଟିଣ ଆସି ଲକ୍ଷ୍ମୀ ପାଶେ ଜଣାଇଲେ । ଭଣ୍ଡାର ପୂର୍ଣ୍ଣ ଶୁଣି ସନ୍ତୋଷ

ହୋଇଲେ ।୧୭୧। ଏ ସମୟେ ନଳରାଜା ରାଜ୍ୟେ ପହଞ୍ଚିଲେ । ସିଂହଦ୍ୱାରେ ପହଞ୍ଚି ହରଷ ହୋଇଲେ ।୧୭୨। ରାଜା ରାଣୀ ପାତ୍ରମନ୍ତ୍ରୀ ଦେଖି ଧାଇଁଗଲେ । ସମାରୋହେ ପାଦତଳେ ସର୍ବେ ଲୋଟିଗଲେ ।୧୭୩। ଉଠ ସର୍ବେ ରାଜାରାଣୀ ଏମନ୍ତ କହିଲେ । ଯେ ଯାହାର କାର୍ଯ୍ୟକ୍ରମେ ସର୍ବେ ଲିପ୍ତ ହେଲେ ।୧୭୪। ଅଭିଷେକର ଯୋଗାଡ ମନ୍ତ୍ରୀ କରାଇଲେ । ଶୁଭ ବେଳେ ରାଜାରାଣୀ ଅଭିଷେକ ହେଲେ ।୧୭୫। ବାଦ୍ୟ ଶବଦରେ ରାଜ୍ୟେ ଆନନ୍ଦ ଲଭିଲେ । ନଗ୍ର ନଗ୍ର ବୁଲିରାଜା ବହୁ ଧନଦେଲେ ।୧୭୬। ଆନନ୍ଦ ହୋଇଣ ରାଜା ପ୍ରଜାଙ୍କୁ ପାଳିଲେ । ରାଜା ପ୍ରଜା ଆନନ୍ଦରେ ସନ୍ତୋଷ ଲଭିଲେ ।୧୭୭। ଏହାପରେ ଶ୍ରୀ ସୁଦଶା ବ୍ରତ ହିଁ ପଡିଲା । ବ୍ରତକରିବାକୁ ରାଣୀ ରାଜାଙ୍କୁ କହିଲା ।୧୭୮। ଏମନ୍ତ ଏ ବ୍ରତ ବୋଲି ଇନ୍ଦ୍ରଙ୍କୁ କହନ୍ତେ । ଇନ୍ଦ୍ର ସହିତରେ ଶଚୀ ଏ ବ୍ରତ କରନ୍ତେ ।୧୭୯। ନାରଦ ଋଷିଙ୍କଠାରୁ କଥାକୁ ଶୁଣିଲେ । ବ୍ରତକୁ ସମ୍ପୂର୍ଣ୍ଣ କରି ଦକ୍ଷିଣାକୁ ଦେଲେ । ୧୮୦। ଦକ୍ଷିଣା ପାଇ ନାରଦ ବିଜେ କରିଗଲେ । ଏ ବିଧିରେ ନର ନାରୀ ଲକ୍ଷ୍ମୀବ୍ରତ କଲେ ।୧୮୧। ଯେଉଁ ନର ନାରୀ ଏହି ବ୍ରତକୁ କରନ୍ତି । ତାଙ୍କରି କନ୍ଦରୁ ଲକ୍ଷ୍ମୀ କେବେ ନ ଛାଡନ୍ତି ।୧୮୨। ଏଣୁ ମହାଲକ୍ଷ୍ମୀ ପାଦେ ଥାଉ ମୋର ମତି । ସଦାଜୟେ ସମ୍ପୂର୍ଣ୍ଣ ହେ ସୁଦଶା ବ୍ରତଟି ।୧୮୩।

॥ ଇତି ଶ୍ରୀ ସୁଦଶାବ୍ରତ ସଦା ଜୟ ॥

---

•





# ଲକ୍ଷ୍ମୀ ପୂଜା ଉପଚାର ବିଧି

## ପୂଜା ପ୍ରୟୋଗ

ଓଁ ଅସ୍ୟ ଶ୍ରୀ ମହାଲକ୍ଷ୍ମୀ ଦେବୀ ପୂଜା ଷୋଡ଼ଶ ଉପଚାରେ ମନ୍ତ୍ରସ୍ୟ, ନାରାୟଣ ଋଷି, ଅନୁଷ୍ଟୁପ ଛନ୍ଦଃ, ଶ୍ରୀ ମହାଲକ୍ଷ୍ମୀ ଦେବତା, ହ୍ଲୀଂ ବୀଜଂ, ଶ୍ରୀ ଶକ୍ତିଃ, ମହାଲକ୍ଷ୍ମୀ ପ୍ରୀତୟେ ପୂଜା ପ୍ରୟୋଗ ବିନିଯୋଗଃ ।

## ମହାଲକ୍ଷ୍ମୀ ଗାୟତ୍ରୀ

ଓଁ ପଦ୍ମ ବାସୀନ୍ୟୈ ବିଦ୍ମହେ, ବିଷ୍ଣୁ ପତ୍ନେ ଚ ଧିମହି, ତନ୍ନୋ ଲକ୍ଷ୍ମୀଃ ପ୍ରଚୋଦୟାତ୍ ।

ଇତି ଗାୟତ୍ରୀ ପ୍ରଣବ ଯୁକ୍ତେନ ଦଶଥା ଜପେତ୍ ।ତତ୍ପର ପ୍ରଣବ ଯୁକ୍ତେନ ମୂଳମନ୍ତ୍ର ମୁଚାରୟେତ୍-ମହାଲକ୍ଷ୍ମୀ ଧୀତ୍ୱା ।ଘଟସ୍ଥାପନଂ ।ଘଟସ୍ୟ ଜଳନଧ୍ୟତ୍ୱା ।ମସ୍ୟ ମୁଦ୍ରାୟା କରାଭ୍ୟା ।ଅର୍ଘ୍ୟ ପାତ୍ର ମାଛଦ୍ୟ, ତାଳତ୍ରୟଂ ଦିଗ ବନ୍ଧ ନାଂ ନାରାଚ ମୁଦ୍ରାୟା ସଂରକ୍ଷ, ହୁଂ ଇତି ଅବଗୁଣ୍ଠନଂ ଚକ୍ର ମୁଦ୍ରାୟା ପୁନଃ ଆଛଦ୍ୟ ।ଅର୍ଘ ମୁଦ୍ରାୟାଂ ପ୍ରଦର୍ଶ, ଧେନୁ ମୁଦ୍ରାୟାଂ ମୂର୍ତ୍ତି କୁର୍ଯ୍ୟାତ୍, ଅର୍ଘ୍ୟସ୍ୟ ସଂସ୍କାର ଦକ୍ଷିଣେ ଫଡିତି ॥ଇତି॥

ପ୍ରୋକ୍ଷଣ ପାତ୍ରଂ ସଂପ୍ରୋକ୍ଷ ଜଳେଣ ମାପୁର୍ଯ୍ୟା । ପ୍ରଣବେନ, ଗନ୍ଧ ପୁଷ୍ପଂ ଦତ୍ୱାଂ, ଅର୍ଘ୍ୟ ଜଳଂ ତତ୍ର ଜଳଦବ୍ୟାତ୍ ତତ୍ୱନେନ ପୂଜାପୋଚାର ଦ୍ରବ୍ୟାଣୀ ଦେବତା ମାତ୍ମାନଂ ଚାରୁପା, ସର୍ବ ବ୍ରହ୍ମମୟ ସ୍ମରେତ୍ । ଇତି ଅର୍ଘ୍ୟସଂସ୍କାର ।

ଘଟ ଉପରେ- ଗଙ୍ଗେଚ ଯମୁନେଶ୍ଚୈବ ତୀର୍ଥ ଆବାହନ, ଚକ୍ର ଧେନୁ, ମୁଦ୍ରା ପ୍ରଦର୍ଶନ କରିବେ । ମୂଳମନ୍ତ୍ର ଆଠଥର ଜପ କରିବେ । ପୂର୍ବରୁ କୁହାଯାଇଛି ପଞ୍ଚଦେବତାଙ୍କୁ ପୂଜା କରି- ଘଟ, ପଟ ବା ମୂର୍ତ୍ତି ପୂଜା କରିବେ ।

ତତ୍ପରେ ଆବାହନ- ଓଁ ମହାଲକ୍ଷ୍ମୀ ଆଗଚ୍ଛ ଦେବଦେବସୀ ! ଦାରିଦ୍ର୍ୟ ଦୁଃଖ ନାଶିନୀ କୃପୟା ଗୃହାଣ ପୂଜାଂ ଷୋଡ଼ଷ ଉପଚାରେ ମମପୂଜା ଗୃହାଣଂ ମାଂ ପ୍ରତି ପ୍ରସନ୍ନଭବ ।

ଏହାପରେ- ଆସନ, ସ୍ୱାଗତ, ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ମଧୁପର୍କ, ପୁନରାଚମନୀୟ, ସ୍ୱାଦ, ବସନ, ଆରେଣ (କଙ୍କଣ, ମୁକ୍ତାହାର, କେଶ ବଧନା, ମୁକୁଟ ହରିଦ୍ରଂ, କୁଙ୍କୁମ ସୁଗନ୍ଧ ଦ୍ରବ୍ୟ, କଜ୍ୱଳ, ଅଳତା, ପାଦୁକା-ଆୟୁଧ-ଶଙ୍ଖ-ଚକ୍ର,ଛତ୍ର, ଗନ୍ଧ ଦାନ, ପୁଷ୍ପ ଦାନ-ଧୂପ, ଦୀପ, ତାମ୍ବୁଳ ଆରତୀ, ଅକ୍ଷତ ପୁଷ୍ପାଞ୍ଜଳୀ, ସ୍ତୁତିପାଠ ପ୍ରଣାମ କରି ପୂଜା ସମାପନ କରାଯାଏ । ହୋମ କରିବାକୁ ହେଲେ- ସଂକଳ୍ପ କରି ମହାଲକ୍ଷ୍ମୀ ମନ୍ତ୍ରରେ କରିବାକୁ ହୋଇଥାଏ ।

ବିଶେଷ ଲକ୍ଷ୍ମୀ ପୂଜାରେ ହୋମ ପରେ ଅନ୍ନଦାନ ବା ବ୍ରାହ୍ମଣ ଭୋଜନାଦି ଦକ୍ଷିଣା ଦେଲେ- ଲକ୍ଷ୍ମୀ ସନ୍ତୁଷ୍ଟ ହୋଇ କୋଟି ଗୁଣରେ ଧନ ଧାନ୍ୟରେ ଭଣ୍ଡାର ଭରି ଦେଇଥାନ୍ତି ।

ମହାଲକ୍ଷ୍ମୀ ସର୍ବତ୍ର ବିଦ୍ୟମାନ । ତାଙ୍କର ଅନ୍ୟ ଏକ ନାମ- 'ପଡ଼ି ସାଆନ୍ତାଣୀ' । କୀଟ ପତଙ୍ଗଠାରୁ ଆ ବ୍ରାହ୍ମଣ ଚାଣ୍ଡାଳ ପର୍ଯ୍ୟନ୍ତ ସେ ଆହାର ଯୋଗାଇଥାନ୍ତି ।

ପ୍ରତିଘରେ ଲକ୍ଷ୍ମୀ ଓ ବିଘ୍ନନାଶକ-ଗଣେଶଙ୍କର ପୂଜା ଦେଖିବାକୁ ମିଳେ ।

ଆମ ଓଡ଼ିଶାରେ ମହାମାୟା ଉତ୍କଳ ଲକ୍ଷ୍ମୀ ନାମରେ ପରିଚିତା- ଜଗନ୍ନାଥ ଧାମ ବା ଶ୍ରୀକ୍ଷେତ୍ର ଧାମ ଦେଶରେ । ଏଣୁ ଲକ୍ଷ୍ମୀ ପୂଜା, ମାଣବସା, ଗୁରୁବାର ବ୍ରତ, ମାର୍ଗଶୀର ମାସରେ ମାଣ ବସିବା, ଆଷାଢ଼ ମାସରେ ମାଣ ଭସାଇବା ଆମର ପ୍ରାଚୀନ ବଣିକ ଇତିହାସରେ ପରମ୍ପରା । ଆହୁରି ମଧ୍ୟ ଦ୍ୱାପର ଯୁଗରୁ ସନ୍ତୁଳିତ ସୁଦଶାବ୍ରତ ଯାହାକୁ ଦଶମୀଯୁକ୍ତ ଗୁରୁବାରରେ ସୁଲକ୍ଷଣୀ ନାରୀମାନେ ବ୍ରତ ପାଳନ କରିଥାନ୍ତି । ଲକ୍ଷ୍ମୀଙ୍କ ନାମ ବଟି ଦୁର୍ବା, ଅକ୍ଷତ ନେଇ ଧଳା ଦଶ ଖିଅ ସୂତାକୁ ବଳି, ତହିଁରେ ବଟି ଗଣ୍ଠି ଲକ୍ଷ୍ମୀ ଦଶ ନାମରେ ପକାଇ ମହାଲକ୍ଷ୍ମୀ ଗାୟତ୍ରୀ ଦଶଥର ଜପ କରି ଲକ୍ଷ୍ମୀଙ୍କ ପାଖରେ ପୂଜା କରାଯାଏ । ଏହି ବ୍ରତକୁ- କୁଳବଧୂମାନେ ହାତରେ ବାନ୍ଧି ସୁଲକ୍ଷଣୀ, ଲକ୍ଷ୍ମୀ ସାଦୃଶ୍ୟତା ଲାଭ କରିଥାନ୍ତି । ଯେଉଁ ଘରେ ପବିତ୍ର ଭାବରେ ଗୃହଲକ୍ଷ୍ମୀ ଗାଇଥାନ୍ତି ଓ ପବିତ୍ରତା ନୀତି ନିୟମ ମାନି ଚଳନ୍ତି, ସେ ଘର ବୈକୁଣ୍ଠପୁର ସମାନ ଆନନ୍ଦ ମୁଖର ହୋଇଥାଏ । ସେଠାରେ ଲକ୍ଷ୍ମୀ ନାରାୟଣ ସୂକ୍ଷ୍ମରେ ବିରାଜିତ ରହନ୍ତି ।



ଏ ସମ୍ବନ୍ଧରେ ଯେଉଁମାନେ ଗୁରୁବାର ଓଷା, ସୁଦଶାବ୍ରତ ବା ବୃହତ୍ ଲକ୍ଷ୍ମୀ ପୁରାଣ ପାଠ କରିଛନ୍ତି ସେମାନେ ଜାଣନ୍ତି । ଅଧିକ କହି-କ୍ଷୁଦ୍ର ପୁସ୍ତକର କଳେବର ବୃଦ୍ଧି କରିବାକୁ ଚାହୁଁ ନାହିଁ ।

ଲକ୍ଷ୍ମୀଦେବୀ ନମସ୍ତୁଭ୍ୟଂ ବିଶ୍ୱଧାତ୍ରୀ ବରପ୍ରଦେ, ଯଂ ତ୍ୱଂ ପୂଜା ପ୍ରକଟିତ ।

ତଦ୍‌ଗୃହେ ସର୍ବଦା ସଂସ୍ଥିତା ଭବଃ ।
(ଇତି ମହାଲକ୍ଷ୍ମୀ ଗାୟତ୍ରୀ ସମ୍ପୂର୍ଣ୍ଣମ୍)

## ଶ୍ରୀ ଶ୍ରୀ ଲକ୍ଷ୍ମୀଙ୍କର ସ୍ତବ

ତ୍ରୈଲୋକ୍ୟ ପୂଜିତେ ଦେବୀ କମଳେ ବିଷ୍ଣୁବଲ୍ଲଭେ ।
ଯତା ତ୍ୱାଂ ସୁସ୍ଥିରା କୃଷ୍ଣ ତଥା ବିଭବମୟୀ ସ୍ଥିର ।
ଈଶ୍ୱରୀ କମଳା ଲକ୍ଷ୍ମୀ ଚଞ୍ଚଳା ଶ୍ରୀହରିପ୍ରିୟା ।
ପଦ୍ମା ପଦ୍ମାଳୟା ସମ୍ପାଦୀ ଚ ଶ୍ରୀପଦ୍ମଧାରିଣୀ ।
ଦ୍ୱାଦଶୈତାନି ନ ମାନି ଲକ୍ଷ୍ମୀସମ୍ପୂଜ୍ୟ ଯଃ ପଠେତ୍ ।
ସ୍ଥିରଲକ୍ଷ୍ମୀଂ ଭବେତ୍‌ତସ୍ୟ ପୁତ୍ରାଦାରାଦିଭିଃ ସହ ।

## ଶ୍ରୀ ଶ୍ରୀ ଲକ୍ଷ୍ମୀଙ୍କର ଧ୍ୟାନ

ଓଁ କାନ୍ତ୍ୟା କାଞ୍ଚନସନ୍ନିଭାଂ ହିମଗିରିପ୍ରକ୍ଷ୍ୟୈଶ୍ଚତୁର୍ଭିର୍ଗଜୈଃ । ହସ୍ତୋଦ୍‌କ୍ଷିପ୍ତ ହିରଣ୍ମୟୀ ମୃତଘଟୈରାଶିଚ୍ୟମାନଂ ଶ୍ରୀୟାମ୍ । ବିଭ୍ରାଣାଂ । ବରମବ୍ ମପୁର୍ଣ୍ଣଭୟହସ୍ତୈଃ କିରୀଟୋଜ୍ୱାଲାମ୍ । କ୍ଷୌମା ବଦ୍ଧନିତମ୍ବୋଲଳିତଂ ବନ୍ଦେଽରବିନ୍ଦସ୍ଥିତାମ୍ ।

## ଅପରଂ ଚ

ଓଁ ପାଶାକ୍ଷା ମାଳିକାମ୍ଭୋଜ ସୃଣିଭାର୍ଯ୍ୟମ୍ୟ ସୌମ୍ୟୟୋଃ
ପଦ୍ମାସନସ୍ଥାଂ ଧ୍ୟାୟେତ୍ ଶ୍ରୀୟେ ତ୍ରୈଲୋକ୍ୟ ମାତରମ୍ ।
ଗୌରବର୍ଣ୍ଣା ସ୍ୱାରୁପାଞ୍ଚ ସ୍ୱର୍ଣ୍ଣାଳଙ୍କାର ଭୂଷିତାମ୍ ।
ଗୌକ୍ମପଦ୍ମ ବ୍ୟଗ୍ରଂ କରଂ ବରଦାଂ ଦକ୍ଷିଣେ ନାତୁ ।

# ଶ୍ରୀ ଶ୍ରୀ ଲକ୍ଷ୍ମୀସ୍ତୋତ୍ରମ

ବନ୍ଦେ ପଦ୍ମକରାଂ ପ୍ରସନ୍ନବଦନାଂ ସୌଭାଗ୍ୟଦାଂ ଭାଗ୍ୟଦାମ୍ ।
ହସ୍ତାଭ୍ୟମଭୟପ୍ରଦା ମଣିରଣେ ନାନାବିଧୈ ଭୂଷିତାମ୍ ।
ଭକ୍ତାଭୀଷ୍ଟଫଳପ୍ରଦାଂ ହରିହରବ୍ରହ୍ମ ଦିଭିଃ ସେବିତାମ୍ ।
ପାର୍ଶ୍ୱେପଙ୍କଜ-ଶଙ୍ଖ-ପଦ୍ମନିଧିର୍ଭିଯୁକ୍ତାଂ ସଦା ଶକ୍ତିଭିଃ ।୧।
ଲକ୍ଷ୍ମୀ କ୍ଷୀରସମୁଦ୍ରରାଜତନୟାଂ ଶ୍ରୀରଙ୍ଗଧାମେଶ୍ୱରୀମ୍ ।
ଦାସୀଭୂତ ସମସ୍ତଦେବବନ୍ଦିତାଂ ଲୋକୈକ ଦୀପାଙ୍କୁରାମ୍ ।
ଶ୍ରୀମନ୍ମନ୍ଦକଟାକ୍ଷଲବ୍ଧବିଭ ବବ୍ରହ୍ମେନ୍ଦ୍ର ଗଙ୍ଗାଧରମ୍ ।
ତାଂ ତ୍ରୈଲୋକ୍ୟ କୁଟୁମ୍ବିନୀ ସରସିଜଂ ବନ୍ଦେ ମୁକୁନ୍ଦପ୍ରିୟାମ୍ ।

ସରସିଜନୟନେ ସରୋଜ ହସ୍ତେ ।
ଧବଳତରାଂ ଶୁକ୍ଳଗନ୍ଧମାଲ୍ୟଶୋଭେ ।
ଭଗବତି ହରିବଲ୍ଲଭେ ମନୋଜ୍ଞେ ।
ତ୍ରିଭୁବନଭୂତିକରେ ପ୍ରସାଦମହ୍ୟମ ।୩।
ମାତ ନମାମି କମଳେ କମଳାୟ ତାକ୍ଷେ ।
ଶ୍ରୀବିଷ୍ଣୁହୃତ୍‌କମଳେବାସିନୀ ବିଶ୍ୱମାତଃ ।
କ୍ଷୀରାବ୍‌ଜେ କମଳକୋମଳଗର୍ଭ ଗୌରୀ ।
ଲକ୍ଷ୍ମୀ ପ୍ରସାଦ ସତତଂ ନମସ୍ତୁତାଂ ଶରଣ୍ୟେ ।୪।

## ଶ୍ରୀ ଶ୍ରୀ ଲକ୍ଷ୍ମୀସ୍ତୁତି

କମଳେ କମଳାରୂଢ଼େ ଶକ୍ତି ପ୍ରଦାୟିନୀ ।
ତ୍ରୈଲୋକ୍ୟପାଳିନୀ ଦେବି ସତତଂ ତାଂ ନମାମ୍ୟହମ୍ ।
ବିଦେହୀ ଦେବୀ କଲ୍ୟାଣ କୁଳୁଷଂ ଜନମଙ୍ଗଳମ୍ ।
ମମଭୀଷ୍ଟପ୍ରଦଂ ଭୁକ୍ତଂ ବାଞ୍ଛିତାର୍ଥ୍ୟଂ ଚ ଦେହୀ ମେ ।୫।

## ପୁଷ୍ପାଞ୍ଜଳିଃ

ନମସ୍ତେ ସର୍ବଦେବୀନାଂ ବରଦାସି ହରିପ୍ରିୟେ ।
ତିଷ୍ଠବଂ ପ୍ରସନ୍ନତାଂ ସାମେୟାତ୍ୱ ଦର୍ଶନାତ୍ୱ ।

## ପ୍ରଣାମ ମନ୍ତ୍ର

ନମେ ବିଶ୍ୱରୂପସ୍ୟ ଭାର୍ଯ୍ୟୟୈ ପଦ୍ମାଳୟେ ଶୁଭେ ।
ସର୍ବତ୍ର ତ୍ରାହି ମାଂ ମାତଃ ଲକ୍ଷ୍ମୀଦେବୀ ନମସ୍ତୁତେ ॥

ସମାପ୍ତ

